( ସ୍ୱତ୍ୱ ରକ୍ଷିତ )

# ଦିବାବର୍ଦ୍ଧିନୀ ଚୌପଦୀ

ଅର୍ଥାତ୍

## ଗାୟତ୍ର୍ୟାର୍ଥ ଚୌପଦୀ ।

( ଗାଟିଏ ଚଉପଦୀର ଗୁଳାଣ ପ୍ରକାର ଅର୍ଥ )



ଶ୍ରୀ ଜଗନ୍ନାଥ ସିଂହଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।

ପ୍ରାପ୍ତିସ୍ଥାନ :—

ଜଗନ୍ନାଥ କୋମ୍ପାନୀ

ନିମଚଉଡ଼ି

ପୋ: ଅ: ଚାନ୍ଦନୀଚୌକ—କଟକ ।

ମୂଲ୍ୟ ୦ ୦/ ଏକଅଣା ମାତ୍ର ।

# ଦିବାବର୍ଦ୍ଧିନୀ ଚୌପଦୀ

## ବା!

## ଗାୟକାର୍ଥ ଚୌପଦୀ

---

ଶୁଣ ସଜ୍ଜନ ସାମନ୍ତେ ଉବସ୍ତ ଦ୍ୱାରେ । ଗୋଟିଏ ଗୀତ ପଢିବି ଆଜ ଏ ସଭାରେ । ୧ । ପୂର୍ବରେ ଅନେକ କବି କରିଛନ୍ତି ଗୀତ । କୌଣସି ପଦରେ ମାତ୍ର ନାହିଁ ପାଞ୍ଚଅର୍ଥ । ୨ । ସୁଭଦ୍ରା ପରିଣୟରେ ଅଛି ଏକପଦ । ନଅଗୋଟି ଅର୍ଥ କରିଅଛନ୍ତି ଉପେନ୍ଦ୍ର । ୩ । ଏ ବାହାରେ ଅନ୍ୟସ୍ଥାନ ଗୀତ ଅଛି ଯେତେ । ଦଶଗୋଟି ଅର୍ଥ କାହିଁ ଶୁଣିଛ ପଣ୍ଡିତେ । ୪ । ଦିବାବର୍ଦ୍ଧିନୀ ବୋଲିଣ ଦେବି ଗୀତ ନାମ । ଷୋଳଗୋଟି ଟଙ୍କା ଅଟେ ଏ ଗୀତର ଦାମ । ୫ । ପ୍ରଥମ ପ୍ରହର ଅଟେ ଚାରିଘଡ଼ି ବେଳ । ଦ୍ୱିତୀୟ ପ୍ରହର ଆଠ ଘଡ଼ିଟି କେବଳ । ୬ । ତୃତୀୟ ପ୍ରହର ଅଟେ ଘଡ଼ି ଯେ ଦ୍ୱାଦଶ । ଚତୁର୍ଥ ପ୍ରହର ଷୋଳ ଘଡ଼ି ଦିନଶେଷ । ୭ । ସେହିପରି ଆଦ୍ୟପଦେ ଚାରିଗୋଟି ଅର୍ଥ । ଦ୍ୱିତୀୟ ପଦରେ ଆଠ ଅର୍ଥ ଯେ ମିଳିତ । ୮ । ତୃତୀୟ ପଦରେ ବାରଗୋଟି ଅର୍ଥ ଥିବ । ଚତୁର୍ଥ ପଦରେ ଷୋଳ ଅର୍ଥ ଯେ ହୋଇବ । ୯ । ଗୀତମାନଙ୍କ ମଧ୍ୟରେ ଏ ଅଟଇ ରାଜା । ଆଉ ଯେତେ ଗୀତସବୁ ଏହାର ପରଜା । ୧୦ । ଦେଢ଼ ମାସରେ ଏ ଗୀତ ହୋଇଛି ତିଆର । ଗାୟକ ଗଳାକୁ ଏ ଅଟଇ ଉହ୍ୱାର । ୧୧ । ଏପରି ଗୀତ ସଭାରେ ଯେବେ ନ ପଢ଼ିବ । ନାନା ଅଥା ଗୀତରେ କି ପ୍ରଶଂସା ମିଳିବ । ୧୨ । ଦିବାବର୍ଦ୍ଧିନୀ ନାମରେ ଏହା ସଙ୍ଗୀତ ।

ଅନ୍ୟ ଶାସ୍ତ୍ରକୁ ପଢ଼ିବ ଶୁଣିବ ପଣ୍ଡିତ । ୧୭ । ଯେ ଗୀତ ନ ପଢ଼ି ଯେବେ ଘରକୁ ସେ ଯିବେ । କବପଣ ଦୂରେ ଥାଉ ମୂର୍ଖେ ଗଣ୍ୟ ହେବେ ।

ଶ୍ଳୋକ

ପ୍ରଥମେନ ଚତୁରର୍ଥ ଦ୍ୱିତୀୟେମଷ୍ଟମାଚରେତ୍ ।
ତୃତୀୟେଦ୍ୱାଦଶୋଚୈବ ଚତୁର୍ଥେଷୋଡ଼ଶୋ ଯୁତା ।

ଗୀତ

ଶ୍ରବଣ କର ପଣ୍ଡିତ ଏ ଗୀତ । ଚାର, ଆଠ, ବାର, ଷୋଳଅର୍ଥ ହେବ ଚାର ପଦରେ ରଚିତ । ପଦ ।

ଅର୍ଥ

ହେ ପଣ୍ଡିତକଳାପ ଏ ଗୀତକୁ ଆପଣମାନେ ଶ୍ରବଣ କର । ଚାର ପଦରେ ରଚିତ ହୋଇ ପ୍ରଥମ ପଦରେ ଚାର ଅର୍ଥ, ଦ୍ୱିତୀୟ ପଦରେ ଆଠ ଅର୍ଥ, ତୃତୀୟ ପଦରେ ବାରଅର୍ଥ, ଚତୁର୍ଥ ପଦରେ ଷୋଳଅର୍ଥ, ଏଣୁ ଏହାର ନାମ ବିବାବର୍ଦ୍ଧିନୀ ହେବ । ୦ ।

ଗୀତ

ହଂସରେ ଅଦର କରନ୍ତି ଅପାର ସନ୍ତତ ପୂରଣ ଚିତ୍ତ । ଚର୍ଯ୍ୟାରେ ରସନ୍ତି କ୍ଷଣେ ନ ଛାଡ଼ନ୍ତି ବିହାର କର ଜଗତ । ୧ ।

ଶବ୍ଦ

ଶ୍ଳୋକ ।—ଜୀବେଷ୍ୱଞ୍ଜୀବଧୌଧର୍ମେ ଯତ୍ନସ୍ୱୀମ ଭୂଜଙ୍ଗମେ ।
ଶିତେପକ୍ଷେ ବିଶେଷସ୍ତୁ ହଂସଶବ୍ଦୋହୟେ଼ପି ଚ ।
ଚର୍ଯ୍ୟାଶେଷଫଳେପଦ୍ମେ ଭୁକ୍ତରେପ୍ରକରେ ଦିବ ।
ଦ୍ୱିଜେନ୍ଦ୍ରର୍ଥେ ନର୍ମଦ୍ରେ ଚ ବିଶେଷେ ପୁଷ୍ପରେଧ୍ୱନୌ । ୦ ।

ଅର୍ଥ

ପ୍ରଥମେ ବଷ୍ଟୁଙ୍କଠାରେ ।

ଯେ ବିଷ୍ଣୁ, ସେ ହଂସ ଯେ ଜୀବମାନଙ୍କୁ ବଡ଼ ଆଦର କରନ୍ତି । ନଚେତ୍ ବୈଷ୍ଣବମାନେ ବିଷ୍ଣୁଙ୍କୁ ପରମହଂସ ଜ୍ଞାନ କରିଥାନ୍ତି । ସେ

ବିଷ୍ଣୁଙ୍କର ହୃଦୟ ସକଳ ବିଷୟରେ ପୂର୍ଣ୍ଣ ଅଟେ । ଚର୍ଯ୍ୟା ଯେ ବ୍ରାହ୍ମଣ ମାନଙ୍କ ସେବାରେ ସେ ରହିଥାନ୍ତି । ଷଣେମାନ୍ଦ ନ ଛାଡ଼ି ଜଗତରେ ସର୍ବଜୀବରେ ବିହାର କରନ୍ତି । ୧ ।

ଚନ୍ଦ୍ରଙ୍କଠାରେ ।

ଯେ ଚନ୍ଦ୍ର ତାଙ୍କର ହଂସ ଯେ ଶୁକ୍ଲପକ୍ଷ ହେଲେ ଲୋକେ ବଡ଼ ଆଦର କରନ୍ତି । ସତ ଯେ ପନ୍ଦର ଦିବସରେ ପୂର୍ଣ୍ଣ ହୁଅନ୍ତି । ଚର୍ଯ୍ୟା ଯେ ଆକାଶରେ ଉଦୟ ହୋଇ ଜଗତରେ ଥଣ୍ଡା କିରଣ ପକାଇବାରେ ରସିଥାନ୍ତି । ୨ ।

ରାଜାଙ୍କଠାରେ ।

ଯେ ରାଜା ହଂସ ଯେ ଘୋଡ଼ା ଚର୍ଯ୍ୟା ଯେ ହସ୍ତୀ ଅର୍ଥାତ୍ ସବୁବେଳେ ହାତି ଘୋଡ଼ାରେ ରସିଥାନ୍ତି । ସତ୍ୟ, ଶାନ୍ତି, ଦୟା, କ୍ଷମା ଏହିସବୁର ଗୁଣରେ ତାଙ୍କର ହୃଦୟ ପୂର୍ଣ୍ଣ ହୋଇଥାଏ । ଆଉ ମଧ୍ୟ ଜଗତରେ ବିହାର କରନ୍ତି । ୩ ।

ଭକ୍ତଠାରେ ।

ଯେ ଭକ୍ତ ସେ ହଂସ ଯେ ସତ ଧର୍ମରେ ବଡ଼ ଆଦର କରନ୍ତି । ତାଙ୍କ ହୃଦୟ ସତ "ତ" ଯେ ଅମୃତ ବଚନରେ ପୂର୍ଣ୍ଣ ହୋଇଥାଏ, ଚର୍ଯ୍ୟା ଯେ ତୀର୍ଥ—ଗଙ୍ଗାଗୟାଦି ତୀର୍ଥମାନଙ୍କରେ ସ୍ନାନ କରିବା ନିମନ୍ତେ ଜଗତରେ ଭ୍ରମଣ କରନ୍ତି । ୪ ।



ଗୀତ

ରସରେ ଆଦର ଅଟେ ଡ ସୁନ୍ଦର ନ ଜାଣନ୍ତି କାହା ଚିତ୍ତ ।
ବସନ୍ତେ ଅନନ୍ଦଦତ୍ତ ଆଦିକନ୍ଦ ମନ ନୁହଇ ଉଚିତ ।

ଶାନ୍ଦ

ଶ୍ଳୋକ—ରସୋଜଲେ ରସୋହର୍ଷେ ରସ ଶୃଙ୍ଗାର ପୂର୍ବକ ।
ରସ କଥାଦି ନିର୍ଯ୍ୟାସେ ପାରଦେ ଚ ରସୋବିଷେ । ଇତି ଧ୍ୱନିମଞ୍ଜରୀ ।

## ଅର୍ଥ

### ରାମଚନ୍ଦ୍ରଙ୍କଠାରେ ।

ଶ୍ଳୋକ । ଶୃଙ୍ଗାରବୀର କରୁଣା ଦ୍ଭୁତରସ ଭୟାନକ । ବିଭତ୍ସରୌଦ୍ର ଶାନ୍ତୋକ୍ତ ନବ ରସ ପ୍ରକୀର୍ତ୍ତିତା ।—ଯେ ରାମଚନ୍ଦ୍ର ସେ ରସ ଯେ ଶୃଙ୍ଗାରାଦ ନବରସରେ ବଡ଼ ଆଦର କରଥାନ୍ତି । ସେ କାହା ଚିତ୍ତ ନ ଜାଣନ୍ତି କି ? ବସନ୍ତେ କି ଅଯୋଧ୍ୟା ବାସିମାନଙ୍କୁ ଆନନ୍ଦରୂପ କନ୍ଦଳୁ ପ୍ରଦାନ କରିଥିଲେ, ଏ କଥା ମନ୍ଦ ନୋହେ ଉଚିତ ଅଟେ । ୧ ।

### ସୂର୍ଯ୍ୟଙ୍କଠାରେ ।

ଯେ ସୂର୍ଯ୍ୟ ସେ ରସ ଯେ ଜଳରେ ବଡ଼ ଆଦର କରିବାରୁ ପଣ୍ଡିତ-ମାନେ ସ୍ନାନ ସମୟରେ ତାଙ୍କୁ ଜଳ ପ୍ରଦାନ କରନ୍ତି । ସେ ସମସ୍ତଙ୍କ ଚିତ୍ତ ଜାଣିପାରି କିରଣ ପକାଇ ପବନ୍ଧ କରନ୍ତି । ସେ ଆନନ୍ଦକନ୍ଦ ଯେ ଆଦଦେବ ମିତ୍ର ନୋହେ ସତ । "ବ" ଯେ ବରୁଣଙ୍କୁ ଆନନ୍ଦ ପ୍ରଦାନ କରନ୍ତି । ସମୁଦ୍ରରେ ବରୁଣଙ୍କର ବାସ । ସୂର୍ଯ୍ୟ ଉଦୟ ହେଲେ ସମୁଦ୍ର ଜଳରଶ୍ମିରୁ ବର୍ଦ୍ଧିତ ହୁଏ । ଉଚିତ ପ୍ରମାଣରେ ମନ୍ଦ ଯେ ଶନଶ୍ଚର ତାଙ୍କର ପୁତ୍ର ନୋହେ କି ? । ୨ ।

### ଶିବଙ୍କଠାରେ ।

ଯେ ଶିବ ସେ ରସ ଯେ ବିଷରେ ବଡ଼ ଆଦର କରନ୍ତି । ସେ କାହା ଚିତ୍ତ ନ ଜାଣନ୍ତି କି ? ଦେବତାମାନଙ୍କ ମନଜାଣି ବିଷପାନ କରି ଥିଲେ । ବ ଯେ ପବନଙ୍କୁ ଆନନ୍ଦକନ୍ଦ ଯେ ବୀର୍ଯ୍ୟ ପ୍ରଦାନ କରିଥିଲେ । ଏଣୁ ମହାଦେବଙ୍କ ପୁତ୍ର ହନୁମାନ ଅଟେ ଏ କଥା ଉଚିତ ନୋହେ ମନ୍ଦ ଯେ ବଡ଼ଲୋକ ତାଙ୍କୁ ସବୁ ପାରିଯାଏ । ୩ ।

### ଇନ୍ଦ୍ରଙ୍କଠାରେ ।

ଯେ ଇନ୍ଦ୍ର ସେ ଋଷିମାନଙ୍କର ମନ ଜାଣିପାରି ରସ ଯେ ଜଳ ପ୍ରଦାନ କରିବାରୁ ଋଷିମାନେ ବଡ଼ ଆଦର କରଥାନ୍ତି । ପର୍ଯ୍ୟା ।—

ଶାସ୍ତ୍ରେ ବରୁଣେବାଚେ ବକାରଶ୍ଚ ପ୍ରକୀର୍ତ୍ତିତା । ଇତି ଏକାକ୍ଷର କୋଷ । ସେ ଉତ୍ତମ ରୂପେ ବର୍ଷା ହେଲେ "ବ" ସେ ଶାସ୍ତ୍ରର ଉତ୍ତମ ପ୍ରକାରେ ମିଳେ । କନ୍ଦ ଯେ କନ୍ଦମୂଳ, ସାରୁ; ଆଳୁ, ମୂଳା ପ୍ରଭୃତି ହେବାରୁ ବଡ଼ ଆନନ୍ଦ ଲାଭ କରାଏ । ଉଚିତ ପ୍ରମାଣରେ ବିସ୍ତର କଲେ ମନ୍ଦ ଯେ ଚନ୍ଦସେନ ତାଙ୍କର ପୂଜ୍ୟ ହୋଇବେ କି ? ।୪।

କଦଳୀ ଫଳଠାରେ ।

ଯେ କଦଳୀ ଫଳ ଚର୍ମରେ ରସ ଥିବାରୁ ଲୋକେ ବଡ଼ ଆଦର କରନ୍ତି । ବସନ୍ତେ କି ବିଶେଷ ପ୍ରମାଣେ ସତେ ସେ ଆନନ୍ଦ ପ୍ରଦାନ କରେ । କନ୍ଦମୂଳ ଆଦି ଯେତେ ପଦାର୍ଥ କଦଳୀ ସଙ୍ଗେ ସମସ୍ତେ ମନ୍ଦ ଉଚିତ କି ସମ ନ ନୁହନ୍ତି । ୫ ।

ଅଷ୍ଟାଙ୍ଗଠାରେ ।

ଯେ ଅଷ୍ଟାଙ୍ଗ ସେ ରସ ନାମକ ଧାତୁରେ ବଡ଼ ସୁନ୍ଦର ଆଦର କରେ । ତା ପାଖକୁ ଅଲଙ୍କାର ପ୍ରସ୍ତୁତ କରିବାକୁ ଯେ ରସଧାତୁ ନିଏ ସେ ତାଙ୍କ ମନକାଣି କହେ ବସ ମୁଁ ଦେବ ଅର୍ଥାତ ଯନ୍ତ୍ରଣାଏ । ସେ ସମୟରେ ତାହାର କେତେ ବଡ଼ ଆନନ୍ଦ ହୋଇବେ ଯାହାର ଯେଉଁ ବ୍ୟବସାୟ ତାକୁ ତାହା ସୁଖକର । ଏ କଥା ମନକୁ ହେ ଉଚିତ ଅଟେ । ୬ ।

ସ୍ତ୍ରୀଠାରେ ।

ଯେ ସ୍ତ୍ରୀ ସେ ରଙ୍ଗ ରସରେ ବଡ଼ ସୁନ୍ଦର ଆଦର କରେ । ସେ ଯେଉଁ ପୁରୁଷ ପାଶରେ ବସିଭୂତ ହୋଇଥାଏ ତାହା ଚିତ୍ତ ଜାଣିପାରି ଆନନ୍ଦ ପ୍ରଦାନ କରି ଆନନ୍ଦ ଦିଏ । ସେ ସ୍ତ୍ରୀ ମୁଖରୁ କଥା ଶୁଣିଲେ କନ୍ଦ ଯେ ଶାଠ ଗୁଡ଼କ ମନ୍ଦ ହୋଇବେ ବୋଲି କେହୁ କହିବ । ସେ ସ୍ତ୍ରୀ ପ୍ରଥମ ସୃଷ୍ଟି କାଳରେ ଅଦ୍ଭୁ ଅଟେ । ପ୍ରମାଣ । ଶ୍ଳୋକ । ଜନ୍ମ କାଳେ ଭବେ ମାତା, ପୂଜା କାଳରେ ଦେବତା । ପ୍ରୀତିକାଳେ ଭବେ ଭାର୍ଯ୍ୟା, ସଂହାର ରୂପ କାଳିକା । ୭ ।

## ବୈଦ୍ୟଠାରେ ।

ଯେ ବୈଦ୍ୟ ସେ ପାରଦକୁ ବଡ଼ ଯତ୍ନରେ ଆଦର କରି ରଖି-ଥାଏ । ସେ ପାତ୍ର କେଉଁବାଟେ ଗଳ ପଡ଼େ ବୈଦ୍ୟ ଛାଡ଼ା ଅନ୍ୟ-କର ପାଏ ନାହିଁ । ବସନ୍ତେ କର୍ବସ ଦୃଯେ ପାରାକୁ ଭସ୍ମ କର ପାନ କଲେ ବଡ଼ ଆନନ୍ଦ ପ୍ରଦାନ କରେ । ସେ ଆଦ କନ୍ଦ ଯେ ଆଦ ବୃକ୍ଷ କହଲୀ ହୋଇ ନ ଥିଲେ ମନ୍ଦ ଫଳ ନ ହଏ କ ? ୮ ।

---

## ଗୀତ ।

ଯେ କ ମାଲହୋଇ ଅଣାରେ ଅଛଇ ମଣ୍ଡି ଦେଇଛି ଜଗତ । ବଳ ଦେଲେ ନେଇ ସମ ହେବ ନାହିଁ କଳକ ହୋଇଣ ହୃତ । ୩ ।

ଶବ୍ଦ ।

ଶ୍ଲୋକ ।—ଷୀରେଷ୍ଟ୍ୱରସେତୋଯ୍ୟେ ମଣ୍ଡେ ମଦ୍ୟେ ଘୃତେସ୍ତୁଜ ।
ମର୍ତ୍ତ୍ୟେସ୍ୱର୍ଗେ ଚ କଲ୍ଲାଲଂ କଥଯ୍ୟନ୍ତି ମନସ୍ୱିନ ।
ବଲୀସ୍ତ୍ରୀମଧ୍ୟଭାଗେ ସ୍ୟାଦ୍ଦଳ ଲ୍ଲୟାଯସ୍ୱିକୃତ ।
ବଲୀପୃଜ୍ୟୋପହାରେସ୍ୟାଦ୍ଦଳ ଲ୍ଲୟାଦଲୀ କରେ ।

ଇତି ଶବ୍ଦମଞ୍ଜରୀ ।

ଅର୍ଥ

## ଦୁର୍ଗାଙ୍କଠାରେ ।

ଯେ ଦୁର୍ଗା କଲ୍ଲାଲ ଯେ ରକ୍ତ ବୋଲି ଯେଉଁ ପଦାର୍ଥ ଅଛି ତାହାର ଅଣାରେ ଜଗତକୁ ମଣ୍ଡି ଦେଉଅଛି । ଛେଳ, ମେଣ୍ଢା ବଳ ଦେଲେ ସେ ସମସ୍ତେ ଶାନ୍ତ ନ ହେବେ କ ? କଳଯୁଗରେ ଦେବୀ ପାଖରେ ବଳଦେବା ହୃତଅଟେ । ୧ ।

## ରାକ୍ଷସୀଠାରେ ।

ଏକଦା ଏକରାକ୍ଷସୀ ବକ୍ରମାଦତ୍ୟ ମହାରାଜାଙ୍କ ସଭାରେ ଏକ ପ୍ରଶ୍ନ କର କହଲା ଏହାର ଉତ୍ତର ନ ଦେଲେ ସମସ୍ତଙ୍କୁ ଗିଳଦେବ । ଏ କଥା ଶୁଣି କବକୁଳଚୂଡ଼ାମଣି ମହାରାଜାଙ୍କୁ କହଲେ ଏ ରାକ୍ଷସୀ କଲ୍ଲାଲ ଯେ ମଦ୍ୟ ଅଣାରେ ଅସି ଜଗତକୁ ମଣ୍ଡି ଦେଉଅଛୁ ।

ମାଛ ମାଂସ ଅବା ପୋଡ଼ାବଲୀ ଦେଲେ ତାହାର ଗ୍ଳାନ ଶାନ୍ତ ନ ହେବ କି ? କଳିଯୁଗକୁ ଏ ରାକ୍ଷସୀ ହତ ହେଲାଣି ଯେ ଅନ୍ୟାୟ କାର୍ଯ୍ୟ କରବ ତାକୁ ଏ ଗିଳଦେବ । ୬ ।

ବେଶ୍ୟାପାଟରେ ।

ଯେ ବେଶ୍ୟା କଳ୍ପିଲ ଯୁକ୍ତା ଅର୍ଥାତ୍ ସ୍ୱର୍ଣ୍ଣହୀନ ହୋଇଥିଲେ ସୁଦ୍ଧା କାହାକୁ ନ କହି ନାନା ଅଳଙ୍କାର ମଣ୍ଡନ ପୂର୍ବକ ବେଶ-ଭୂଷାରେ ଧନ ଲୋଭରେ ପୁରୁଷକୁ ଆଶାକର ବସିଥାଏ । ସେ ସମ-ୟରେ ବଳୀ କି ଅଳତା ଲଗାଇବାକୁ ଦେଲେ ତା ସୁନ୍ଦର ପଣ ସଙ୍ଗେ ସମାନ ନ ହେବ କି ? କଳିଯୁଗରେ ଲୋକମାନେ ଯେପରି ପରଦାର କରୁଅଛନ୍ତି ବେଶ୍ୟାମାନେ ଥିଲେ ବଡ଼ ଉପକାରକୁ ଆସିବେ । ଏଣୁ ଉପେନ୍ଦ୍ରଭଞ୍ଜ କବି ରସପଞ୍ଚକ ସକାର ଢଙ୍ଗରେ କହି ଅଛନ୍ତି । "ସେହାଣେ ହସି ସଖୀକୁ ଭାଷି ସ୍ୱର୍ଣ୍ଣ ଅଳଙ୍କାର ଗଣିକା-ରାଣି । ସଙ୍ଗବେଶ୍ୟାର ନାହିଁ ଯାହାର ସେ ରସ ନ ଜାଣେ ପଶୁ ଗୁଆଁର" । ଇତ୍ୟାଦ । ୩ ।

ଦୂତ ପୁରୁଷକୁ ବହୁଅଛୁ ।

ଭ୍ରମର ଯେ ପ୍ରିୟବତୀ କଳ୍ପିଲ ଯେ ଫୁଲ ରସ ଅର୍ଥାତ୍ ଅତର ଲଗାଇ ଯାଇ ଯୁଇଫୁଲ ଶେଯରେ ପକାଇ ଦବ୍ୟ ସୁନ୍ଦର ବେଶହୋଇ ମହିମଣ୍ଡନା ନାମ ଧାରଣ କରି ଭ୍ରମ ଆଶାରେ ବସିଅଛୁ ଏହି ସମ-ୟରେ ତା ଅତରଠାରୁ ବଳକର ଭ୍ରମେ ଅତରଟିକିଏ ନେଇ ଦେଲେ ଭଲ ନ ହେବ କି ? ଭ୍ରମେ ଯାହା କଳ କଥାଟା ଧରି ବହିଅଛ କଳଟା କେଉଁ କାଳରେ ହତ ହେଲାଣି କି ? । ୪ ।

ନଦୀପାଠରେ ।

ଯେ ନଦୀ ସେ କଳ୍ପିଲ ଯେ ଜଳ ଅଗ୍ରେରେ ଥାଏ ନଦୀ ବଢ଼ିଲା ସମୟରେ ମଣ୍ଡି ଯେ ଫେଣ୍ଟିଲ ନାତ ହୁଏ । ବଳକେ ବହୁତ କରି ଇନ୍ଦ୍ର ଯେବେ ଜଳ ପ୍ରଦାନ କରିବେ ଭଲ ନ ହେବ କି ? କଳିଯୁଗରେ ଜଳପୂର୍ଣ୍ଣ ନଦୀ ଉପକାରକୁ ଆସେ ।

ବୀର ପୁରୁଷଠାରେ ।

ସେ ବୀରବର ଦେହରେ କାଇମାନ୍ତି ବୋଳି ରାଗରେ ନେଇ ମୁଖ ଉପରି ଲାଲ କରି ଯୁଦ୍ଧ ଆଶାରେ ରହି ବୀରପଣେ ଜଗତକୁ ମଣ୍ଡନ କରୁଅଛି । ବଳୀକ ଜଣେ ବକ୍ତୃଆ ଲୋକ ତା ପାଖରେ ଦେଲେ ସମାନ ନ ହେବ କି ? କଳି କି ବାଦ କରିବାକୁ ଏ ବୀର ପୁରୁଷ ହୃତ ଅଟେ । ୬ ।

ଫୁଲ ବଗିଚାଠାରେ ।

ସେ ବଗିଚାରେ ଅଶୋକ, କରବୀର, ମନ୍ଦାର ପ୍ରଭୃତି ଫୁଲମାନ ଫୁଟି କେତେ ଲାଲବର୍ଣ୍ଣରେ ଭ୍ରମର ଆଶାରେ ରହି ଜଗତକୁ ମଣ୍ଡନ କରୁଅଛି । ଦେବତାମାନଙ୍କ ସକାଶେ ଏ ଫୁଲରୁ ଗୁଡ଼ାଏ ବଳି କି ପୂଜାଉପକରଣକୁ ଦେଲେ ଭଲ ନ ହେବ କି ? କଳି କି କାଠ ଗୁଡ଼ିକୁ ହୃତ ହୋଇଅଛି । ଫୁଲ ଫୁଟିଥିଲେ କାଢ଼ି ନେଇ ହେବ ନାହିଁ । ୭ ।

ପ୍ରାଣ ପ୍ରୟାଣକାଳଠାରେ ।

ଜଣେ ଲୋକ କହୁଅଛି ସେ ବ୍ୟକ୍ତିର ପ୍ରାଣ ନ ଥାଉ ମାତ୍ର ସେ କହିଲ ଯେ ସ୍ୱର୍ଗକୁ ଯିବାଆଶାରେ ଅଛି । ଏହି ସମୟରେ ଏହାର ପୁତ୍ର ଏହା ମୁଖରେ ମଣ୍ଡି ଯେ ତୋରାଣୀ ନେଇ ଦେଉଅଛି । ଜଗତ ଅର୍ଥାତ୍ ମନାକର ଅମୃ କଥା ନ ମାନି ବଳେଇ କରି ଏହା ମୁଖରେ ତୋରାଣୀ ଦେଲେ ସମ ଯେ ଶାନ୍ତ ପ୍ରକୃତ ଲୋକପରି ସେ ସ୍ୱର୍ଗକୁ ଯାଇ ପାରିବ ନାହିଁ । କଳିଯୁଗରେ ସ୍ୱର୍ଗକୁ ଯିବା ଦୁର୍ଲ୍ଲଭ ଅଟେ । ୮ ।

ମହାରାଜାଙ୍କଠାରେ ।

ସେ ମହାରାଜା ହଜିଲି ଯେ ମର୍ତ୍ତ୍ୟ ଅର୍ଥାତ୍ ଖଣ୍ଡେ ଭୂମି ଅଧିକାର କରିବା ଆଶାରେ ରହି ରାଜୋଚିତ ଗୁଣଦ୍ୱାରା ଜଗତକୁ ମଣ୍ଡନ କରୁ- ଅଛନ୍ତି । ପ୍ରଜାମାନେ ବଳ କି ବଳିତ ଖଜଣା ଦେଲେ ସେ ତହିଁରୁ ସମ ଯେ ଶାନ୍ତ ନ ହେବେ କି ? କଳିଯୁଗରେ ମହାରାଜାମାନେ ବାଦ-

କରି ବଳପୂର୍ବକ ଅନ୍ୟ ପ୍ରଜାମାନଙ୍କର ଭୂମି ଅଧିକାର କରିବା ହେଉ ଅଛି । ୯ ।

ଦଧିପଠାରେ ।

ସେ ଦଧି କହିଲ ଯେ ଘିଅ ହେବା ଆଶାରେ ବସିଅଛୁ । ତାକୁ ମନ୍ଥନ କଲେ ସେ ଜଗତକୁ ମଣ୍ଡି ଯେ ଘୋଳ ପ୍ରଦାନ କରିବ ଲକ୍ଷ୍ମୀ ଲହୁଣୀ ବାହାରିବ । ତହିଁରେ ବଳଙ୍କ ହସ୍ତ ଦେଲେ ଉତ୍ତମରୂପେ ଘିଅ ହୋଇ ପାରିବ ନାହିଁ । କଳଙ୍କ କଳତଙ୍କରିର ହୋଇ ଦେହ ଗରମ ହୋଇଥିଲେ ଦହିଖାଇଲେ ଥଣ୍ଡାହେବ । ୧୦ ।

ଧେନୁପଠାରେ ।

ସେ ଧେନୁ ଯେ ଗାଈ କହିଲ ଯେ ଦୁଗ୍ଧବତୀ ହୋଇ ଗୋପାଳ ଆଶାରେ ରହି ମଣ୍ଡି ଯେ ହମ୍ବାରଡ଼ି ଦେଉଅଛୁ । ଜଗତ ଅର୍ଥାତ୍ ପଳାଇ ଯିବନ୍ତି ଯଦି ରକ୍ଷା । ବଳ ଯେ ଜଣେ ବୁଢ଼ା ଗଉଡ଼ୁଣୀଏ ତା ପାଶରେ ଦେଲେ ଭଲକରି ଦୁଗ୍ଧ ଦୋହନ କରି ପାରିବ ନାହିଁ । କଳିଯୁଗରେ ଏପରି ଗାଈ ଯାହା ଘରେ ଥିବ ବଡ଼ ଉପକାରକୁ ଆସିବ । ୧୧ ।

ଗାୟକପଠାରେ ।

ଏ ଗାୟକ ଗୀତ ପଢ଼ି ପଢ଼ି ତଣ୍ଟି ଶୁଖିଗଲାଣି । କହିଲ ଯେ ମଣ୍ଡି ଅର୍ଥାତ୍ ତତଲା ତୋରାଣୀ ତା ମୁଖରେ ଢାଳ । ଜଗ ବାହ୍ମଣ ପଳାଇ ଯିବନ୍ତି । ବଳଦେଲେ କି ଭଲରୂପେ ଢାଳିଦେଲେ ଦେହଟା ସମାନ ନ ହେବ କି ? କଳ ଯେ ବାଦକରିବାକୁ ଏ ମନୁଷ୍ୟ ହେଲାଣି ? ଲଜ୍ଜା ନାହିଁ ମୁଖେଦେଖାଉ ଅଛୁ । ୧୨ ।

---

ଗୀତ ।

ମଧୁରସେ ରସ ହୋଇଣ ହରଷ ବରଷ ଭାବ ଯୁଗତ । କଣରସ-ଦକ୍ଷଣ ସରସ ବଦ୍ଧଷ ଉକାସ୍ୱାଦାସ ରଚିତ । ୪ ।

ଶବ୍ଦ ।

ଶ୍ଲୋକ ।—ମଧୁମଦ୍ୟେ ମଧୁକ୍ଷୁଦ୍ରେ ମଧୁ ଚୈତ୍ରେ ଭୁମଧୁ ।
ମଧୁର୍ଦ୍ଦୈତ୍ୟ ବିଶେଷସ୍ତୁ ମଧୁକୋଽପି ମଧୁସ୍ମୃତଃ । ଇତ୍ୟଧ୍ୱନମଞ୍ଜରୀ ।
ପଦ୍ମେ ଯୋଗେ ମୃଗେଚୈବ କର୍ପୂରେ କନକେନ୍ଦିଶ୍ର ।
କାଳେ ବାଳେ ମହାରଣ୍ୟେ ମଧୁଶବ୍ଦ ପ୍ରକୀର୍ତ୍ତିତା ।
ଭକ୍ଷ୍ୟ ପାକେ ଚ ଲବଣେ ଯେ ଦେ ସତ୍ୟେ ଦୃଢେ ପ୍ରିୟେ ॥
ଇତି ଶବ୍ଦାମ୍ଭୋଧି । ୦ ।

ଅର୍ଥ ।

ଭାବ ପ୍ରଶଂସା ।

ଯେ ଯେଉଁ ଭାବ ରସ ତାକୁ ବଳ ମଧୁର ବ୍ରହ୍ମାଣ୍ଡରେ ନାହିଁ । ବର ସ୍ୱଭାବ ଟ ଯାହାର ରସିକତା ଚତୁର ପଣଥାଏ ସେ ତାହା ଭୋଗ କର ପାରେ । ୧ ।

ଦେବତାଙ୍କଠାରେ ।

ଦେବତାମାନେ ମଧୁ ଯେ ଅମୃତରେ ସବୁବେଳେ ରହିଥାନ୍ତି । ବର ସଭା ଯେ ସୁଧର୍ମା ସଭା ତହିଁରେ ବସନ୍ତି । ୨ ।

ମହାଜନଠାରେ ।

ମହାଜନ ସେର ଯେ ଓଜନ ଯନ୍ତ୍ର ଠିକ୍ ପାଇଲେ ମଧୁ ଯେ ଅମୃତ ଖାଇଲା ପରି ଆନନ୍ଦ ହୁଏ । ସେ ଓଜନଯନ୍ତ୍ର ବର ସ୍ୱଭାବ, ତହିଁରେ ଓଜନ କରିଦେଲେ କ୍ରେତାମନରେ ସନ୍ଦେହ ରହେ ନାହିଁ । ୩ ।

ସମୁଦ୍ରଠାରେ

ଯେ ସମୁଦ୍ର ସେ ମଧୁରସରେ ଯେ ଲୁଣିଆ ଜଳରେ ସବୁବେଳେ ରହିଥାଏ । ବର ସ୍ୱଭାବ ସେ ଗର୍ଭରୁ ରତ୍ନ ମାଣିକ୍ୟ ରତ୍ନମାନ ଜାତ ଓ ଗମ୍ଭୀର ଅଟେ । ୪ ।

ମଧୁମାଛିଠାରେ ।

ଯେ ମଧୁମାଛି ସେ ମଧୁ ସଞ୍ଚୟ କରିବାରେ ରହିଥାଏ । ତାହାର

କପଟ ବର ସ୍ୱଭାବ କ ଶ୍ରେଷ୍ଠମନ, ସେ ପରଉପକାର ନିମନ୍ତେ ପରିଶ୍ରମ କରିଥାଏ । ୫ ।

ବସନ୍ତକାଳଠାରେ ।

ଯେ ବସନ୍ତକାଳ ସେ ମଧୁ ବୋଲନ୍ତେ ଚୈତ୍ରମାସରେ ରହିଥାଏ । ଷଡ଼ଋତୁ ମଧ୍ୟରେ ସେ ବର ସ୍ୱଭାବ ଦ ସାମନ୍ତ ଅଟେ । ୬ ।

ପୁଷ୍କରିଣୀଠ ରେ ।

ଯେ ପୁଷ୍କରିଣୀ ସେ ମଧୁ ଯେ ପଦ୍ମବନରେ ରହିଥାଏ । ବର ଯେ ଭ୍ରମରମାନେ ତା ଉପରେ ରହି ଗୁଣୁ ଗୁଣୁ ଶବ୍ଦ କରନ୍ତି । ୭ ।

କନ୍ଦଠାରେ ।

ଯେ କନ୍ଦ ସେ ମଧୁରରସରେ ସବୁବେଳେ ରହିଥାଏ । ଯାହାର ବର ସ୍ୱଭାବ ଯେ ଭଲମନ୍ଦ ଜାଣିବାର ଶକ୍ତି ଅଛି ସେ କନ୍ଦ ପାଇଲେ ଗୁଡକୁ ଆଦର କରିବ କି ? ୮ ।

ଭିକ୍ଷାରୀଠାରେ ।

ଯେ ଭିକ୍ଷାରୀ ସେ ମଧୁ ଯେ ଭିକ୍ଷା ମାଗିବାରେ ରହିଥାଏ । ଭିକ୍ଷା ପାଇଲେ ତାହାର ଆନନ୍ଦର ସୀମା ରହେ ନାହିଁ । ସବୁବେଳେ ତାହାର ଦୁଃଖ । ୯ ।

ପଣ୍ଡିତଙ୍କଠାରେ ।

ରଘ ଯେ ସମୁଦ୍ର ଜଳରେ ମଧୁକୈଟଭ ସଙ୍ଗେ ଯୁଦ୍ଧରେ ରହିଥିଲେ ସେ ବସ୍ତୁ ବର ସ୍ୱଭାବ ଯେ ପଣ୍ଡିତମାନେ ସେ ପ୍ରଭୁଙ୍କ ଗୁଣ ଗାୟନ କରନ୍ତି । ୧୦ ।

ଯୋଗୀଠାରେ ।

ଯେ ଯୋଗୀ ସେ ଯୋଗ ସାଧନାରେ ରହିଥାନ୍ତି । କାମ କ୍ରୋଧ ଲୋଭ ମୋହ ଦମନକରି ବର ସ୍ୱଭାବ କ ଶ୍ରେଷ୍ଠମନ ଧାରଣ କରିଥାନ୍ତି ॥

ପବନଠାରେ ।

ଯେ ପବନ ସେ ମଧୁ ଯେ ମୃଗଠାରେ ବର ସ୍ୱଭାବ ଢ ପ୍ରଭୁପଣରେ ରହିଥାଏ । ପବନର ବାହନ ମୃଗ ଅଟେ । ୧୨ ।

ବର୍ଣ୍ଣିକଠରେ ।

ଯେ ବର୍ଣ୍ଣିକ ସେ ମଧୁ ସେ ସୁବର୍ଣ୍ଣ ପାଇଲେ ବଡ଼ ଆନନ୍ଦ ହୁଏ । ଆଉ ମଧ୍ୟ ସୁନାକୁ ଯୋଡ଼ ବରଷ୍ଟଭାବ ଯେ ଉଜ୍ଜ୍ୱଳ କରେ । ୧୩ ।

ଯମଠରେ ।

ଯେ ଯମ ମଧୁ ଯେ କାଳବକାଳଠାରେ ସ୍ୱଭାବ କ ସାମନ୍ତ ପଣରେ ରହିଥାଏ । କାଳବକାଳ ଯମର ଦୂତ ଅଟନ୍ତି । ୧୪ ।

ମାତାଠରେ ।

ଯେ ମାତା ସେ ବର ଯେ କାନ୍ତ ସଙ୍ଗରେ ରହିବାରୁ ତ,ଠାରୁ ଜାତ ହୁଏ ମଧୁ ଯେ ବାଳକ ପାଇଲେ ତାହାର ହରଷରେ ହନ ଯାଏ । ୧୫ ।

ପଶୁଠାରେ ।

ଯେ ପଶୁ ସେ ମଧୁ ଯେ ଅରଣ୍ୟରେ ଥାଏ ବରଗଛ ପର ବଡ଼ ବଡ଼ ଗଛମାନ ଯେଉଁ ବନରେ ଥାଏ ଖରାହନରେ ପଶୁମାନେ ସେ ବୃକ୍ଷ ତଳରେ ଆଶ୍ରୟ ଗ୍ରହଣ କରନ୍ତି । ହେ ବିଦୂଷ କ ପଣ୍ଡିତମାନେ ଏ ରସ ଯୁକ୍ତ ଗୀତ କେତେକ୍ଳେଶ ଯେ ପଶ୍ଚିମରେ ରଚନା ହୋଇଅଛି ଭକ୍ତ ଚରଣଦାସ କବିରହି କହିଲେ ଆପଣମାନେ ବିଗ୍ଭର କରନ୍ତୁ । ୧୬ ।

ସମାପ୍ତ ।



କଟକ ହରପ୍ରେସରେ ଶ୍ରୀ ହରମୋହନ ହର୍ତ୍ତିଙ୍କ ଦ୍ୱାରା
ମେଦିନୀଯନ୍ତ୍ରେ ମୁଦ୍ରିତ । ୧୯୩୩ ।

ବିଜ୍ଞାପନ ।

## ନୂତନ ପୁସ୍ତକ

# ଢଗରତ୍ନମାଳା

ଦେଖନ୍ତୁ ! ଜାଣନ୍ତୁ !! ପଢ଼ନ୍ତୁ !!!

ସୁଲଭ ମୂଲ୍ୟ ଟ ୦ ୶ ମାତ୍ର ।

ମହାଶୟ,

ଢଗରତ୍ନମାଳା ନାମକ ଖଣ୍ଡିଏ ନୂତନ ପୁସ୍ତକ ଛପା ହୋଇଅଛି ସେଥିରେ ନାନାପ୍ରକାର ମନୋମୁଗ୍ଧକର ନୂତନ ଢଗମାନ ଦିଆ ହୋଇଅଛି । ଖଣ୍ଡିଏ ପୁସ୍ତକ କ୍ରୟକରି ଜାଣନ୍ତୁ, ଏପରି ଢଗପୁସ୍ତକ ଅଦ୍ୟପର୍ଯ୍ୟନ୍ତ ଛପା ହୋଇ ନାହିଁ । ପୁସ୍ତକ ଖଣ୍ଡି ପଢ଼ିବାକୁ ଆରମ୍ଭ କଲେ ଶେଷ ନ କରି ଛାଡ଼ି ପାରିବେ ନାହିଁ । ପୁସ୍ତକ ଖଣ୍ଡି ଦେଖିଲେ ଅବଶ୍ୟ ଜାଣି ପାରିବେ ।

| | | | |
|---|---|---|---|
| ଚୌପଦୀରତ୍ନମାଳା ୧ମ ଭାଗ | ... | ... | ଟ ୦ / |
| " " ୨ୟ ଭାଗ | ... | ... | ଟ ୦ ୵ |
| ଗୋଲକୁଞ୍ଜ ( ଗାୟକମାନଙ୍କର ପ୍ରଶ୍ନୋତ୍ତର ) | | ... | ଟ ୦ ୶ |
| ସଙ୍ଗୀତକୁସୁମୋଦ୍ୟାନ (ଉର୍ଦ୍ଦୁ, ଓଡ଼ିଆ, ବଙ୍ଗଳା ଓ ହିନ୍ଦୀଗୀତ) | | | ଟ ୦ ।୶ |
| ଚନ୍ଦ୍ରମୁଖୀଙ୍କ ଶିକ୍ଷା ବା ସୁରଭିଣୀ ସ୍ତ୍ରୀ | ... | ... | ଟ ୦ / |
| ସଙ୍କୀର୍ତ୍ତନରତ୍ନମାଳା ( ପ୍ରଥମ ଭାଗ ) | ... | ... | ଟ ୦ ୷ |
| ରସିକରଞ୍ଜନ ରସଭାଷା ବା ଚଟାଉ ଚଉପଦୀ | | ... | ଟ ୦ / |
| ଚଟଣୀସଂଗ୍ରହ ( ନାନାପ୍ରକାର ଚଟଣୀ ପ୍ରସ୍ତୁତ ଶିକ୍ଷା ) | | | ଟ ୦ / |
| ଚଉପଦୀସାଗର ( ଅଭିନବ ସଂସ୍କରଣ ) | | ... | ଟ ୦ । |

ଜଗନ୍ନାଥ କୋମ୍ପାନୀ
ମୁ: ନଟିଚଉଡ଼
ପୋଃ ଗୁନ୍ନୀଚୌକ କଟକ



ଶ୍ରୀ ଜଗନ୍ନାଥ ସିଂହ